ନିତ୍ୟାନନ୍ଦ ଦାସଙ୍କ ବିରଚିତ

# ଆର୍ଯ୍ୟଧ୍ୱଂସକ ।



ଦ୍ୱିତୀୟ ସଂସ୍କରଣ ।



PRINTED & PUBLISHED BY S. B. RAI.

RAY PRESS,

CUTTACK.

1901.

ମୂଲ୍ୟ ୬ ॰ ୯ ଦଶପଇସା ।

# ଆର୍ତ୍ତଧ୍ୱଂସକ ।

---

ପ୍ରଥମ ଛନ୍ଦ ।

କୃପାସିନ୍ଧୁ ଦୀନବନ୍ଧୁ ଅଘତମଇନ୍ଦୁ ଅହେ ଅଭଙ୍ଗନାଶନ ।
ହେ ନନ୍ଦନନ୍ଦନ ପାଦ କର ଧାନ କେବଣ ପତିତଜନ ।
ମହାପ୍ରଭୁ ହେ । ୧ ।
ଦୀନ ଅପରାଧୀ ଦୁଃଖଜଳଧିରେ ପଡ଼ି ବସୁରଇ ମନ ।
ଦୁଃଖ ସନ୍ତାପ ଖେଦଭରା ଛାମୁରେ କହବାକୁ ନିବେଦନ ।
ମହାପ୍ରଭୁ ହେ । ୨ ।

ପଡ଼ି । ଛପୋଇ ବାଣୀ ।

ନୀଳନବଘନ ସୁନ୍ଦରବରନ ଶ୍ରୀମୁଖମାଧୁରୀ ଅତି ଶୋଭା ।
ଶିରେ ଶିଖୀଚୂଳ ମାଳତୀ ବକୁଳେ ଝଙ୍କାରୀ ମଧୁପକୁଳ ପ୍ରଭା । ୧ ।
ଅଳକାବଳୀ ଯେ ଅଳିଶିଶୁପନ୍ତି ଶ୍ରୀମୁଖ ନବନଳିନ ଜାଣି ।
କପାଳେ ଚନ୍ଦନବିନ୍ଦୁ ଶୋଭିବନ ଉଦେ ହୋଇଛି ଯେ ନିଶାମଣି । ୨ ।
ଭ୍ରୂଲତା ସୁନ୍ଦର ଯେ ଏ କାମକର କୋଦଣ୍ଡ ରଖିଛି ପ୍ରଭେ ହୋଏ ।
ବିକଚକମଳ ପ୍ରାୟ ବେନନୟନ ଲହରୀ ଖେଳଇ କର୍ଣ୍ଣଯାଏ । ୩ ।
ମନୋହର ନାସା ପୁଟେ ସୁଘଟିତ ବର୍ତ୍ତୁଳ ଗଜମୁକୁତାବର ।
ବିମ୍ବଫଳ-କାନ୍ତି ଅଧରପଲ୍ଲବ ମନ୍ଦହାସ ମୋହେ ତିନିପୁର । ୪ ।
ମକରକୁଣ୍ଡଳ ଯେ ରବିମଣ୍ଡଳ କର୍ଣ୍ଣେ ଝଟକନ୍ତି ତେଜ ଘେନି ।
ଭକତ-ଦୁଃଖ-ତିମିର ନାଶିବାକୁ ଉଦେ ହୋଇଛି ଯେ ରବି ବେନି । ୫ ।
କମ୍ବୁକଣ୍ଠେ ଶୋହେ ମୁକୁତା କନକକଣ୍ଠୀ ମିଶାମିଶି ବନମାଳ ।
କଉସ୍ତୁଭମଣି ଗୁଞ୍ଜ ତାର ଜିଣି ଅନୁପମର ତରଙ୍ଗକୁଳ । ୬ ।

ମତ୍ତକରିବର-କରକୁ ନିନ୍ଦଇ ବୃଷାଳ ବଳନ ବାହୁବେନି ।
କରୀଠ ବାହୁଟ ମୁଦ୍ରିକା ଅଙ୍ଗୁଷ୍ଠି ଅଶେଷ ଶୋଭ ମୁରଲୀ ଯେନି । ୭ ।
ହୃଦୟ ବିସ୍ତାର ଶ୍ରୀବତ୍ସପଦ୍ମର ଚର୍ଚ୍ଚିତ ଚନ୍ଦନ ମୃଗମଦେ ।
କଟିରେ କିଙ୍କିଣୀଶ୍ରେଣୀ କଣି କଣି ପୀତପଟ ସୌଦାମିନୀ ଉଭେ । ୮
ଶ୍ରୀପୟରଯୁଗଳେ ନୂପୁର ମଞ୍ଜୁଳ ରୁଣିତ ଶବଦେ ଧ୍ୱନି କରେ ।
ଅରୁଣ ଚରଣତଳେ ବିରାଜିତ ଅଷ୍ଟାଦଶଚିହ୍ନ ଯହିଁ ଧରେ । ୯ ।
ଚତୁର୍ବର୍ଗମୟ ଯହିଁରୁ କ୍ଷରତ ବାଞ୍ଛାକଳ୍ପତରୁ ବୋଲାଯାରେ ।
ସ୍ତୁତିରେ ସିଦ୍ଧି ଦୁର୍ବୁଦ୍ଧି ଅପରାଧୀ ନିତ୍ୟାନନ୍ଦେ ପାଲେ ରଖ ପାରେ । ୧୦ ।

---

ଦ୍ୱିତୀୟ ଛାନ୍ଦ ।

ଅଟ୍ଟେ ଗୋପୀନାଥ ଅନାଥର ନାଥ ଅଟ୍ଟେ ଆତଙ୍କନାଶନ ।
ଶରଣରକ୍ଷଣ ଅଟ୍ଟେ ଦୀନଜନବନ୍ଧୁ କଷ୍ଟନିବାରଣ ।
ମହାପ୍ରଭୁ ହେ । ୧ ।
ଅଲକ୍ଷରକ୍ଷକ ଅଟ୍ଟେ ମହାବାହୁ ଅପକ୍ଷପକ୍ଷ ଗୋସାଇଁ ।
ଅପ୍ରାଧଭଞ୍ଜନ ଅଟ୍ଟେ ଅନ୍ତର୍ଯ୍ୟାମି ଜଗନ୍ନାଥ ସ୍ୱବଗ୍ରାହି ।
ମହାପ୍ରଭୁ ହେ । ୨ ।

ପଦ୍ୟ ।

ରତନା-କଣ୍ଠା-ପ୍ରାଣଜୀବ ଅଟ୍ଟେ ଗୋପର ଭୟପଦଭଞ୍ଜନ ତୁହି ।
କୃଷ୍ଣାବର୍ଣ୍ଣ ଉଡ଼ା ବାହୁରୀକଟଡ଼ା କେଶିଦିଶ୍ରମନ୍ତା ଦଇତ୍ୟାରି ।
କଂସଦମର୍ଦ୍ଦନ ଅଟ୍ଟେ ଜନାର୍ଦ୍ଦନ ବାମକରେ ଗିରିବରଟେକା ।
ଅନ୍ଧାସୁର ଯୋଡ଼ା ଯାମଳା ଉପୁଡ଼ା ବେନଯାଳ କଲ କରେ [illegible]
ବାହାଜନଲପିଅ ଗୋବତ୍ସାସୁ ଭୁଞ୍ଜା ଅଟ୍ଟେ ଶଙ୍ଖଚୂଡ଼ଗଣ୍ଡିଭର ।
କୁବଳୟ ମଈ ବିନାଶନ ଛଲ ବାଦେ କୁରାଇଲ ସୁନାଚୀର । ୭ ।
ବାଣୀପ୍ରିୟଭଞ୍ଜନ ଅଟ୍ଟେ ତାଳବନ-ଧେନୁକାପରାଣହର ତୁହି ।
ଗୁରୁକନ୍ୟା ବିନାଶି ଦରିଆ ଅଗ୍ନି ଗ୍ରାସ କରି ଗୋପଙ୍କୁ ପଙ୍କେ ତାରୁ । ୪ ।

ଅଟନ୍ତି ଉତ୍ତମହଂସ ସେବିତ ସୁରଗଣ ପଦ୍ମବନ୍ଧୁ ନାଥ ।
ଅଟନ୍ତି କଉରବବଳକ୍ଷୟକାରୀ ହୋଇଲ ସାରଥି ପାର୍ଥରଥ । ୫ ।
ଅଟନ୍ତି ଗଜଇନ୍ଦ୍ର ବନ୍ଧନବାରଣ ଚକ୍ରପ୍ରହାରଣ ମହାବାହୁ ।
ଅଟନ୍ତି ଗର୍ଭିଣୀଦୁର୍ଗତିନାଶନ ଦ୍ରୌପଦୀବସ୍ତ୍ରଦଚନ୍ଦ୍ରରାହୁ । ୬ ।
ଅଟନ୍ତି ପ୍ରହ୍ଲାଦ ବିଷମ ପ୍ରମାଦ ବିପଦଖଣ୍ଡନ-ଦଣ୍ଡୀଭବ ।
ଅଟନ୍ତି ଧ୍ରୁବ ଧ୍ରୁବଙ୍କୁ ଧ୍ରୁବପଦଦାତା ତୁମ୍ଭେ ଅଟ ବାସୁଦେବ । ୭ ।
ଅଟନ୍ତି ସୁଗ୍ରୀବର କ୍ଲେଶହରୁବର-ପ୍ରବଳମରୁତ ଚକ୍ରଧର ।
ଅଟନ୍ତି ବିଭୀଷଣଶରଣରକ୍ଷଣ ରାବଣ-ଦୂଷଣନାଶକର । ୮ ।
ଅଟନ୍ତି ଅଜାମିଳକଲ୍ମଷ କମଳବନ-ଶିଶିର କରୁଣାକର ।
ସୁଦାମାଦାରିଦ୍ର୍ୟ କଷ୍ଟମାନହର ତୃଷିତଚାତକଜଳଧର । ୯ ।
ଅଟନ୍ତି ଉତ୍ତରାଆପତ୍ତି ନିବାରଣ ଶୋଣିତବିନ୍ଦୁ ବିପଦୁଁ ତାରୁ ।
କଟନ୍ତି ନିତ୍ୟାନନ୍ଦ ଅଟନ୍ତି ଆନନ୍ଦକନ୍ଦ ପୂର୍ଣ୍ଣିମା ଜଣାଣ ବାରେ ସ୍ମର । ୧୦ ।

---

ଭୃଙ୍ଗପ୍ରିୟ ଛନ୍ଦ ।

ତୁମ୍ଭପରା ପ୍ରଭୁ ଥାଉଁ ଥାଉଁ ମୁଁ ଯେ ବୁଡ଼ିଲି ବିପଦଜଳେ ।
ଏତେବେଳେ ପ୍ରଭୁ ଡାକ ନ ଶୁଣୁଛ ଯେତେ ଡାକିଲେ ବିକଳେ ।
ମହାପ୍ରଭୁ ହେ । ୧ ।
ସ୍ଥଳମାନ ଯେତେ ମନ୍ଦିର ଭିତରେ ତେମନ୍ତ ହେଉଛି ଦଶା ।
ଏଥିରେ ଜାଣିତ କରୁଣା କୋହନ୍ତୁ ମୁଁ ଯେ କରୁଛି ଭରସା ।
ମହାପ୍ରଭୁ ହେ । ୨ ।
ପଦି ।
ବିପଦଧାଡ଼ି ଯେତେ ମାଡ଼ିପଡ଼ୁଛି କେତେ ତୁହି କହିବ ମନେ ହେଲି ।
ସିଂହ ମୃଗ ଅଟେ ପରା ତାଙ୍କ ଧଇର୍ଯ୍ୟବନ୍ତ ତା ପାଉଛି ଘଳି ।୧
ଯେତେରୂପେ ଦଣ୍ଡ ଦୁଃଖ ଦେଉଅଛ କହିବାକୁ ମୋତେ ଅସୁ ନାହିଁ ।
ଯେତେ ଥିଲା ଆଶ ଅଟନ୍ତି ପୀତବାସ ଏବେ ତୁମ୍ଭ ନରାଶକୁ ଗହି । ୨ ।

ପ୍ରଭୁ ତୋର କୃପା ନ କରୁଛୁ କିପାଁ ଦୀନପତିତଜନଙ୍କଠାରେ ।
ଅଛିନ୍ତି ନିରାଶପଣ କବଳରେ ଭାସିଗଲି ଶୋକନଦୀଧାରେ । ୩ ।
ଆଉ ପ୍ରଭୁପଣ କରୁଣାକୃପଣ ହେବାରୁ ମିଳିବ ନ ଆଗଇ ।
ଲୁଚୁଥିଲେ ଭେଲା ଛନ୍ତି ବଳେ ହେଲା ଦାରୁଣପଣ କି ଏ ନୁହଇ ।୪।
କରୁଣାନାବକ ନାବ ଥାଉଁ କୂଳେ ଖେଦଜଳଧିରେ ଗଲି ବୁଡ଼ି ।
ତରଳ ତରଙ୍ଗ ରଙ୍ଗରୀ ପ୍ରଖର ଏମନ୍ତ ନଦୀରେ ଦେଲ ଛାଡ଼ି ।୫।
ମୁଁ ଯେ ମଲେ ମଲି ଭାସିଗଲେ ଗଲି ତୁମ୍ଭଙ୍କୁ ବିନା ଏ ଅସୁନ୍ଦର ।
ତୁମ୍ଭ ନାମ ଧର୍ମ ହେବ ଏତେସରୁ ଜଗତେ କିବା ବୋଲିବେ ନର ।୬।
ମତେ ଏ ଦୁର୍ଗତି ଯେତେ ନ ବାଧଇ ତୁମ୍ଭ ନିନ୍ଦା କଷ୍ଟେ ମରୁଅଛୁ ।
ପୂର୍ବର କରୁଣା ଏବେ ଦେଖି ଊଣା ନଷ୍ଟୀଦଶା ମନେ ଗଣୁଅଛୁ ।୭।
ନାନାରୂପେ ଶାସ୍ତି ଦେଇ ଦୁଃଖହସ୍ତୀ ଦନ୍ତରେ ଗଞ୍ଜିବା ମନ କଲ୍ପ ।
ବିପତ୍ତି-କରୀନାଶନ ତୁମ୍ଭ ବାନା ବିଞ୍ଚାଇ ନୀଳାଦ୍ରି ସିଂହ ହେଲ୍ପ ।୮।
ଧୈର୍ଯ୍ୟ-କମଳବନକୁ ମୋ ହୋର ଧ୍ୱଂସି ପକାଉଛି ପ୍ରବଳରେ ।
ରକ୍ଷ ରକ୍ଷ ପ୍ରଭୁ ପ୍ରମତ୍ତକେଶରୀ ବୋଲି ଡାକୁଅଛୁ ବଳରେ ।୯।
କେବେହେଁ କରୁଣାନଦୀ ନ ବହିଲ, ବଢ଼ିଲ ସଂକଟ ଗିରିବର ।
କହେ ନନ୍ଦାନନ୍ଦ କର୍ମହୀନ ମନ୍ଦ ପଦପଦ୍ମକୁ ନାଥ କର ।୧୦।

---

ଚତୁର୍ଥ ଛାନ୍ଦ ।

ପତିତ ଜନଙ୍କୁ ଉଦ୍ଧାରିବାପାଇଁ ଉଡ଼ାଉଅଛ ପତାକା ।
ବାନ୍ଧି ଟେକି ତୁମ୍ଭେ ବସି ଚାହୁଁ ଚାହୁଁ ବିପତ୍ତି କରୁଛ ଡକା ।
ମହାପ୍ରଭୁ ହେ ।୧।

ନାଶ ଗଲେ ତୁମ୍ଭେ ପଡ଼ୁଛ କି କଦର୍ଯ୍ୟ କରୁଣାଭଣ୍ଡାର ଫେଇ ।
ଦୁଃଖୀ ଗଲେ ନାଶ ଅକୀର୍ତ୍ତି କି ଯଶଃ ପଡ଼ୁଛି ଚଉବର୍ଗ ଦେଇ ।
ମହାପ୍ରଭୁ ହେ ।୨।

ପଦି ।

ଘୋରକଳିକାଳ ଥାଉଁ ଯେବେ ଦୀନଗଣଙ୍କ ଜୀବନ ହରାଇବ ।
ସମୁଦ୍ର ବରଷି ଘୋର ଜଳରାଶି ଶୁଭକାବନ୍ଧୁ କି ବୋଲାଇବ । ୧ ।
ମାଳତୀ ବକୁଳ ବଜ୍ରକମଳବନ ଥିବେ ଅଳି ଯିବେ ମରୁ ।
ପୂର୍ଣ୍ଣସୁଧାକର ଅନାଇଁ ଚକୋରମାଳକା ଯେବେ ମରିବେ ଝୁରୁ । ୨ ।
କଳ୍ପଲତାତଳେ ଥାଇ ଯେ.ଜ ଫଳେ ନିରାଶ ହୋଇବା କେତେଜ ମୁଁ
ରତ୍ନାକର ହୋଇ ରତ୍ନରଙ୍କ ଯହିଁ ଏ କଥା କେମନ୍ତ ଦେବରାଜ । ୩ ।
ଥାଉଁ ଗଙ୍ଗାକୂଳେ ପରାଣବଳେ ତୃଷାରେ ଯେବେ ହୋଇବ ପ୍ରାଣ
ଚିନ୍ତାମଣି ଥିବ ଅନ୍ଧାର ହୋଇବ ଏ କଥା ପ୍ରଭୁ ମନକୁ ଆଣ । ୪ ।
ସ୍ୱାମନ୍ତ ଯେ ଚତୁର୍ବର୍ଗଅଧିକାରୀ ଲକ୍ଷ୍ମୀ ପଦଗଣ ଥିବେ ହୋଇ
ଏମନ୍ତ ସ୍ୱାମନ୍ତ ଅଣ୍ଡା କର ରୁତଧ ଭିକ୍ଷା ମାଗୁଥିବ ଦୁଃଖ ପାଇଁ । ୫ ।
ଏଥୁ ଅଧିକ କି ଅଛି ଲୋକଦୃଷ୍ଟା ଆଉ କି ରହିଲା ପ୍ରଭୁ ଆଶି ।
ଯମଦଣ୍ଡ ସହି ପ୍ରାପ୍ତ ଯମକରା ବ୍ୟର୍ଥ ଧରିବା ତକ ପାଣି । ୬ ।
ଦୀନବନ୍ଧୁ ବୋଲି ନାମ ଯେ ବହିଚ ଏହା ନ ଭେଦ କି ଯୁବତ୍ଥାନ୍ତି
ଏନାମ ଏବେ ଏଣିକି ନ ବହିବ ଚତୁରାନ୍ତି ଲେଉଟ ଥିଉ ନେଇ । ୭ ।
ତେବେ ତୁମ୍ଭଙ୍କୁ କେ ଖାହିଁକି କହିବ କର୍ମ ଅଦର ସହିବ ଦୁଃଖ ।
ନରାଣ ଜଳଧି ତୁମ୍ଭ ନାମ ହିଁଶ ଜଗତରେ ବାଜପାଠ ଡାକ । ୮ ।
ଅଭ ଭୁବନରେ ଟାଳୁଚ ଖୋଜିବା ତୁମ୍ଭପରା କେହି ଥିଲେ ଛତେ
ଦୁଃଖିଜନଙ୍କର ଦୁଃଖ ହରୁଥିବେ କୃପାବାନ୍ ଜନ ନେତ୍ରକୋଣେ
ମୁଦର୍ଶନ ନାମେ ଚକ୍ର ବହିଥିବେ ଦେଢବାହୁରେ ଦକ୍ଷିଣକରେ ।
ଲକ୍ଷ୍ମୀ ନିତ୍ୟାନନ୍ଦ ଅପରାଧୀ ମନ ମୋହର ଶରଣ ଗୋବିନ୍ଦ ପାରେ । ୯ ।

---

ପଞ୍ଚମ ଛାନ୍ଦ ।

କଳ୍ପିଲୋକଙ୍କୁ ଦୁଃଖ ଶୋକପଙ୍କୁ ପ୍ରଭୁ ଉଦ୍ଧରନ୍ତି ବେଗେ ।
ଅଗତ୍ୟା ମନବାଞ୍ଛିତ ଦାନ ହେଉ ଟଙ୍କ ଧୁଣ୍ଡି ନେଜେ ନେଜେ ।
ମହାପ୍ରଭୁ ହେ । ୧ ।

ତାହା ଶୁଣି ମୁଁ ଯେ ମନ ଦମ୍ଭ କଲି ନ ଡରଇଁ ବିପତ୍ତିକି ।
ବୋଲଇ ଜେତେ ବିପତ୍ତି ସ୍ମରନ୍ତି ଏ ଅବା କେତେମାତ୍ର କି ।

ମହାପ୍ରଭୁ ହେ । ୨ ।

ପଦି ।

ଅନଙ୍ଗେ ତରଙ୍ଗୀ ହୋଇଣ କୁରଙ୍ଗୀ ଭୟେ ତାଙ୍କ ଦେହ ଯେତେବେଳେ
କାହିଁ ଥାଇଁ ତୁଭ ତାହା ଶୁଣୁଥିଲ ପ୍ରସନ୍ନ ହୋଇଲ ସେତେବେଳେ । ୧ ।
କାହିଁ ଥିଲ ଘନ ପ୍ରବଳ ପବନ ବସ୍ତ୍ର ସର୍ପ କାହିଁ ଥିଲ ରଖି ।
ଏକାବେଳକେ ସଂକଟ କାଟିଦେଲ ନବଘନେ କି ଦେଖିଲ ସଖୀ । ୨ ।
ଦେଖି ହରିଣୀ ହରଷ ବିକଶିଲ ନାଠ ବନ ବେନ ଶିଶୁ ଘେନ ।
କୃପା କଲେ ଏତେ କୃପାହିଁ କରଛ କରୁଣାସାଗର କୃପାଦାନ । ୩ ।
ଗଜରାଜ ଜଳେ କୁମ୍ଭୀର କବଳେ ଅନଙ୍ଗେ ଡାକନ୍ତେ ଆଦିମୂଳ ।
କେତେଦୂରେ ତାହା କେମନ୍ତେ ଜାଣିଲ ଚକ୍ରେ ଛେଦିଲ କୁମ୍ଭୀରଶିର ।
ଅହେ ପୀତାମ୍ବର ସ୍ୱଚ୍ଛ ଅମ୍ବରରାଶି ଲାଗି ରଖିଥିଲ କହିଁ ।
ଚନ୍ଦ୍ରବାମାନଙ୍କେ ଲଜ୍ଜାସିନ୍ଧୁ ହରି ଦ୍ରୌପଦୀକି ତାହା ଦେଲ ନେଇଁ ।
ପଞ୍ଚ ପାଣ୍ଡୁସୁତ ଅନଳରେ ଥିଲେ କେମନ୍ତେ ତାହା ପାଇଲ ଜାଣି ।
କାହିଁ ଛନ୍ଦେଇଲ କାହିଁରେ ରଖିଲ ଜଳିଥିଲେ କଉରବଶ୍ରେଣୀ । ୬ ।
ଜଗାନ୍ନ କାଳିନ୍ଦିଭାଗାକୂଳକମଳବଦନର ହେଲ ବନ୍ଧୁ ।
ନାରୀକାଭବନ ନୃପତିକୁମାରୀ କୁମୁଦଚନ୍ଦ୍ର ହରଷ ଇନ୍ଦୁ । ୭ ।
ବଳେ ଯାଚ ଧନ ଅନ୍ନକୁ ଭେଟନ ତୁମ୍ଭେ ଗୋପଦାଣ୍ଡେ ଦେଲ ପଶା ।
ତାଙ୍କ ଅସୁନ୍ଦର କୁଜ୍ଝା ସୁନ୍ଦର ତୁମ୍ଭେ କି ନ କଲ ଅଗ୍ରଗତୋ । ୮ ।
ଗଉତମନାରୀ ଅଛ ପଥର ତାର ଗତ୍ରୁ ପଦପଦ୍ମରଜରେ ।
ପ୍ରହ୍ଲାଦ ପୋଗବପତ୍ତି ନାଶିଲ ଦେବରାଜ କଲ ଦେବପୁରେ । ୯ ।
ସୁଦାମା ଦାରିଦ୍ର୍ୟ କଷ୍ଟକୁ ହରିଲ କଲ କୁବେରମୂର୍ତ୍ତିମଣି ।
କହେ ନିତ୍ୟାନନ୍ଦ ଏବେ ଏତେ ଛନ୍ଦ କାହିଁକି କରୁଛ କମ୍ବୁପାଣି । ୧୦

ଷଷ୍ଠ ଗୀତ ।

ତୁମ୍ଭ ଗୁଣିବାକୁ ମୋହର କହିବାକୁ ସମୟ ନାହିଁ ମୁରାରି ।
ତୁମ୍ଭ କୃପା ହେତୁ ହେଉ କହୁଁ କହୁଁ ବୟସ ଦେଉଛୁ ସାରି ।
ମହାପ୍ରଭୁ ହେ । ୧ ।

ଦୁଃଖତଟିନୀତଟତରୁ ହୋଇ ମୋ ଚିତ୍ତେ ବଳ ନାହିଁ ମୂଳେ ।
ତୁମ୍ଭ କରୁଣା ପ୍ରବଳପବନରେ ଉପୁଡୁଛୁ ମୁଁ ସମୂଳେ ।
ମହାପ୍ରଭୁ ହେ । ୨ ।

ପଦି ।

ମୁହିଁ ଗଲେ ନାଶ ତୁମ୍ଭେ କେଉଁ ଯଶ ଲଭିବ ଅହେ କରୁଣାନିଧି ।
ମନ୍ଦଠାରେ ଇଚ୍ଛା ଅଧିକରେ ଜାଣ ଯହାରେ କେତେ ଉଣିବ ସିଦ୍ଧି । ୧ ।
ଦୁଷ୍ଟମତ୍ତନାଗ ରହିଥିଲେ ଆଗ କେହି ତା ପୁଚ୍ଛ ଦିଅଇ ଚିପି ।
ଧର୍ମିଜନଙ୍କ ଗୃହ ଦେବା ବନମାଳ ଯେଉଁଠାରେ ହିଂସ୍ର ଥ ଏ ଝାମ୍ପି । ୨ ।
ପ୍ରବଳପବନ ଘାତେ ରମ୍ଭାବନ ହୋଇଯା ପ୍ରାୟେ ମରୁଛୁ ସବ ।
କାଲକୁ ଚନ୍ଦ୍ରାର ଯେବେ କଟେ ବଡ ଦୁଃଖୀ ମରୁଥାଇ ଝୁରି ଝୁରି । ୩ ।
ଏ ଡକାପାରଇ ତାକୁ ନ ଶୁଭଇ ସେ କେବେ ହୃଦୟ କଷ୍ଟ ତାର ।
ତେମନ୍ତ ତାର ଯେମନ୍ତ ଗତି ହୋଇ ବେଳୁଁବେଳ ଏ ମୋ ଦୁଃଖଭର ।
କୃପଣକୁ ଲୋଭୀ ଥାଇଁ ଯେବେ ହେତ ଧର ନ ଛାଡ଼ଇ କେବଳେ
ଏତ ନ ଦିଅଇ ସେହି ତ ନ ଛାଡ଼ଇ ଲୋଭୀ ନାଶ ଫଳ ପାଇ କାଳେ ।
ପ୍ରଭୁଙ୍କୁ କୃପଣ ଉରେ ନ ବୋଲଇ ଦୁଃଖୀ ଲୋଭପଣ ହୋ ଏ ସିଦ୍ଧି ।
ପ୍ରଭୁପଣ ଥିଲେ ସବୁହିଁ ସୁନ୍ଦର ଅସୁନ୍ଦର କଥା କଲେ ବଧି । ୬ ।
ହୋଇ କୃପାହିନ୍ତୁ କହିବାକୁ ବନ୍ଧୁ ସ୍ୱଭାବ ବୋଲି ଜଗତଠାରେ ।
ତେବେହେଁ ବୋଲନ୍ତି କରୁଣା ସମୁଦ୍ର ବଦେବ ମହତ ଶବ୍ଦ କରେ । ୭ ।
ଦୁଃଖ-ଅନ୍ଧାରେ ନାମ ସୁଧାକର ହୋଇ ତ କିରଣ ନ ଛାଡ଼ିଲ ।
ଏମନ୍ତ ନିଷ୍ଠୁର ହୃଦୟ କଠୋର ନିନ୍ଦାଘଟନରେ ଉପାଡ଼ିଲ । ୮ ।

ସୁଷୁପ୍ତିକୁ ବୋଲି ମରଣ ମୁଁ ଗଲି ଦେଖୁଁ ଦେଖ ଜଗୃତିଲି କୂଳେ ।
ପତିତପାବନ ଅପ୍ରାଧଭଞ୍ଜନ ସତ୍ତେଙ୍କୁ ଢ ଏ ସ୍ମରିଲ ତାଳେ । ୯ ।
ତୁମ୍ଭେ ସତ୍ୟବାଦୀପଣ ଛାଡ଼ିଲେ ପ୍ରିଥ୍ୱୀ ଆଉ କେହି ମର୍ତ୍ତ୍ୟେ ରହିବ କି ।
ଜଗତେ ନରାଧାନନ୍ଦ ମୂଢ଼ ହୀନ ମନ୍ଦ ଷିତିର ଧାମକୁ କେ ନାହିଁବ କି । ୧୦ ।

—:୦:—

## ସପ୍ତମ ଛାନ୍ଦ ।

ଅପରାଧ ଅତା ବଳି ମହାପ୍ରଭୁ କରୁଅଛୁ ଏଠେପର ।
କ୍ଷମାଶୀଳପଣେ ତୁମ୍ଭଙ୍କୁ କେ ସର ଅଛ ନୀଳାଦ୍ରିବେଶର ।
ମହାପ୍ରଭୁ ହେ । ୧ ।
ପୂର୍ବେ ଶ୍ରୀବତ୍ସବ୍ରାହ୍ମଣ ଭୃଗୁମୁନେ ପାଦଘାତ ଜନ୍ମ କେଲ ।
କୃପା ବଳ ସେତେ ଶୁଣି ଏତେବେଳେ ମୋର ତନୁ ପୁଲକର ।
ମହାପ୍ରଭୁ ହେ । ୨ ।

ପଦି ।

କାଳିନ୍ଦୀକୂଳରେ ପାଦକମଳରେ ବକଅସୁର ଡାକ ଦେଲା ବାହୀ ।
କୋପ ଭର ଯାହା କୃପା ବଳ ତାହା କେଷ ଶୀବ ନ ପାଇଲେ ପ୍ରଭୁ ।
ଅଧିକ ମୂଳରେ ବାନ୍ଧିଲ ଯନ୍ତ୍ରେ କୃଷ୍ଣ ଠେ ପ୍ରାପ୍ତେ ରଥାଙ୍ଗଚକ୍ର ।
ଏବେ କ୍ଷମାବସୁନ୍ଧ୍ୟ ନ ଶୁଣିଲା ମୋହ କର୍ମ ନାଶ କେହ୍ଲ ହୀନ । ୨ ।
ମୁଁ ଯେ ଅପରାଧବୃନ୍ଦ ଆଚରିଛି ତହେଁ ଦୁଃଖଗ୍ରାକ ଅଚ୍ଛ ତୋଠି ।।
ଏତେ ଅପଦରେ ନଗାସକୁଠାରେ ତୁମ୍ଭେ ତ ମୂଳ ଦେଉଛ କାଠି ।୩
ତଥେଁ କ୍ଷମାଶୀଳ ହୁଦ ହେଲ୍ଲ ଶୀଳ କେମନ୍ତେ ବସ୍ତ ରଖିବ ଅଭ ।
ନ ଜାଣି ଅପ୍ରାଧ ପ୍ରଭୁ ହେଲେ କ୍ରୋଧ ମୁଁ ଯେ ତାହାକୁ କହିବ ଅଭ ।୪।
ଛିଙ୍ଗ୍ୟ ନ ଜାଣଇ ଅପ୍ରାଧ କରଇ ପ୍ରଭୁ କୋପ ଦୂରକଥା ଧର ।
ଏତ ନ ଜାଣିଲ ଦେଖ ବୋଲେ ମାଇଲ ମଳ୍ଲତପଣ ଢ କେହ୍ଲା ତୃଭ । ୫
ତୁମ୍ଭେ ଜଗନ୍ନାଥ ମୁହିଁ ଯେ ଅନାଥ କ୍ଷୋଭ ଜଗତଭରତେ ଜଣେ ।
ଏହି ନାମରେ ଯେ ଭରସା କରିଛୁ ପ୍ରାଣୀ ଅବରକ୍ଷା କେଡ଼ିଏ ମନେ । ୬ ।

ଯେଣୁ ଜଗଦ୍ବନ୍ଧୁ ଥାଉଁ ମୁଁ ଅବନ୍ଧୁ ହୋଇ ନ ଶୁଣୁଛ ଏତେ କହ ।
ତୁମ୍ଭ କୀର୍ତ୍ତି ନାମ ପତିତପାବନ କେତେ ମ୍ଲେଚ୍ଛ ନ ନବାରେ କହ । ୭ ।
ତୁମ୍ଭ କରେ ଯାହା ଧରିଅଛ ତାହା ପୂର୍ବତେଜ ନାଶ ହେଲ କିସ ।
ଦୂରେ ଜଣାଇଲେ ନିକଟେ ଶୁଭିବ ଏସବୁ ଅନ୍ତର ହେଲ ଟିକ । ୮ ।
ଗତ ଅନୁକମ୍ପା ଛାଡ଼ିଲ ତ ସମ୍ପା ନ ଥିଲ ଶରଦଘନ ପର ।
ପୂର୍ବଦୁଃଖ ନାଶ ଶୁଭୁଅଛି ଘୋଷ ମୋ ମନ ଚାତକ ଆଶା ଧର । ୯ ।
ସେ ନ ବରଷିଲ ଏ ପ୍ରାଣେ ନାଶିବ କାଳ ବଳେ ଆଶା ମଲାଇଲ ।
ଜଗବାନନ୍ଦ ବୋଲେ କଷ୍ଟ ଦାବାନଳେ ଧଇର୍ଯ୍ୟ ପତଙ୍ଗ ଦହାଇଲା । ୧୦ ।

—— ○ ※ ○ ——

ଅଷ୍ଟମ ଛାନ୍ଦ ।

ଅଜ୍ଞା ଦେବ ଅବା ବିଧାତା ଲେଖିବା କପାଳକଥା ପ୍ରସିଦ୍ଧି ।
କରମ୍ଭକରତା କଲ୍ପବଲ୍ଲି ଦାତା ତୁମ୍ଭେ ଯେ ବିଧାତା ବିଧି ।
ମହାପ୍ରଭୁ ହେ । ୧ ।
ତୁମ୍ଭର ଶରଣ ହୋଇ ଅକାରଣ କର୍ମ ଯେତେ ଆଦରିଲି ।
ତୁମ୍ଭ ଭୃତ୍ୟ ହୋଇ କର୍ମ ବନ୍ଧ ସହି ଭେଦେ ତ କିଛି ନୋହିଲି ।
ମହାପ୍ରଭୁ ହେ । ୨ ।

ପଦି ।

ଶୁଣିଥାଇ ହରି ବାଳକ ବାତୁରି ଯେଉଁକାଳେ ଯାତା ନେଲା ହରି ।
ଅଙ୍କୁ କଲ କାତ ଧାତା ସର୍ବ ହତ ତୁମ୍ଭେ ପରା ଅଛ ଏହା କରି । ୧ ।
ଅଜ୍ଞା ଦେଲେ ଗୁରୁ ସମନପୁରରୁ ମଲାପୁତ୍ର ବେଗେ ଦେଲ ଆଣି ।
ବରୁଣ ହରିଲ ଗତପ୍ରାଣ ହେଲ ନନ୍ଦ କେ ଆଣିଲ ଚକ୍ରପାଣି । ୨ ।
କାଳ ହରିଥିଲା ସଗର ଜୀଇଲ କାହାର ଆଜ୍ଞାରେ ଲଙ୍କପୁରେ ।
ଅହୁର ହେତୁ ଶୁଣିଲି ବିଧାତା ଜାତ କଲ ନାଭିକମଳରେ । ୩ ।
ଏମନ୍ତ ପ୍ରଭୁର ଧରି ମୁଁ ପଦ୍ମର ସର୍ବ ଆଶା ଥୋଇ ଦୂର କରି ।
ବିଶ୍ଵରଇ ଚରେ କର୍ମ ହୋଇ କେତେ ଦେବେ ତା ହସ୍ତୁଁ ନୋହିଲି ପାରି

ସଖାଏ ଅନ୍ତର ଝଙ୍କସ୍ତମ୍ଭ କରୁ ଯାଉ ବେଳୁ ଥାନ୍ତି ଶିବମେରୁ ।
ତୁମ୍ଭପରା ନାଥ ମୋପରା ଅନାଥ କ୍ଷିତିରେ ଅଛୁ କେ କୃପାମେରୁ ।୫।
ଅନ୍ତର୍ଯ୍ୟାମୀ ନାଥ ଏହା ସେ ଜାଣିବେ ମୋ ମନେ ପ୍ରଣତି କେହ୍ଣ ନାହିଁ ।
ମୋକଥା ଗୋଚର ହେଲେ ଚକ୍ରଧର ଏ ଦଶା ଆଉ ଥାଆନ୍ତା କାହିଁ ।୬।
କଣ୍ଠଗତପ୍ରାଣ ହେଲୁଠାରେ ଟାଣ ପ୍ରଭୁପଣ ଟେକି ନ ରଖିଲ ।
ଦୋଷ ବଳ କେତେ ତାହା ଯେଣୁ ଚିତ୍ତେ ବିପଦଭଞ୍ଜନ୍ତ୍ରୁ ସ୍ଖଳିଲ ।୭।
ପ୍ରଭୁପ୍ରଣୟସଙ୍ଗ କରଇ ଯେ ଦୋଷ ଦଣ୍ଡ ଦେଇ ତାରିବାର ଧର୍ମ ।
ଅତିହିଁ ନିରାଶପଣ କରି ନାଶ କଲେ ଏ ଜନ୍ମର ଏ ଅଧର୍ମ ।୮।
ରାସକ୍ରୀଡାବିନୋ ବରଜକାନନେ ଗୋପୀନମ୍ଭୂତ ଗତନ୍ଦ୍ରଣୀ ।
ଦୁଃଖ ଦେଇ କେତେ ସୁଖ ଦେଲ ଯେତେ ତାହା କେ କହିବ ବେଣୁପାଣି
ବୀରହନୁମାନ ଗରବଗଞ୍ଜନ ମଲ୍ଲ ତିଳଦେବା-ଦୁର୍ଖି ରକ୍ଷି ।
କହେ ନିତ୍ୟାନନ୍ଦ ଯଶଗୁଣଚାନ୍ଦ ସ୍ତମ୍ଭନ ହୋଇଗଲା ପଦ୍ମଆଖି ।୧୦।



ନବମଛାନ୍ଦ ।

ଥୋକାଏ ସାମନ୍ତ କହିଲେ ବହୁତ ସୁଖ ନ ମଣନ୍ତି ଚିତ୍ତେ ।
ନ ଜଣାଇଲେ ବୃତ୍ତ କେହ୍ନ ଜାଣିବ ଅବଧାନ କର ଏବେ ।
ମହାପ୍ରଭୁ ହେ ।୧।
ଯେଣୁ ଏ ମନ ଚଞ୍ଚଳୀଥାଏ ଅଧ୍ୟ ହୋଇଥିଲା ତୁମ୍ଭ ପାଦରେ ।
ତେଣୁ ନ ରହିଲା ଚତୁର୍ବର୍ଗ ଦେଲ ନାମ ଗୁଣମାନଙ୍କରେ ।
ମହାପ୍ରଭୁ ହେ ।

ପଦି ।

ତନୁ ଜଣାଇଲି ଭୟ ଉପେକ୍ଷିଲ ନ କହିଲେ ଯାଉଅଛୁ ଘସି ।
ଏ ଯେ ଭବଜଳ ତାହିଁ ଅଳ କୂଳ ଏଥି ଭଙ୍ଗାଣାବେ ଅଛୁ ଭସି ।୧।
କାମ କ୍ରୋଧ ନେନ ଲହରୀ କ ଜାଣି ପ୍ରବଳେ ଠେଲୁଛୁ ଘନ ଘନ ।
ରାଗ ହିଂସା ରମ୍ଭ ଭଉଁରୀ ଭ୍ରମାଇ ବୁଡାଇ ଦେବାକୁ ତାଙ୍କ ମନ ।୨।

ତହିଁ ଲୋଭ ମୋହ ବେନି କରି ବାଦ କୁମ୍ଭୀରରୂପେ ଅଛନ୍ତି ଜଗି ।
ଉପରେ କାଳମହାବଳ ଝାମ୍ପିଇ ବେଳକୁବେଳ ହୋଇଣ ରାଗୀ ।
ଗରଜିଲା ଅଘ ମଙ୍ଗପରେ ନାଗ ଠାବ ରହିଛନ୍ତି ଟେକି ଫେଣି ।
ଧର୍ମ ନ କରିବା ଅଧର୍ମ କରିବା ବଳ ଫୁଟି ପଶୁଅଛି ପାଣି । ୪ ।
ଚିନ୍ତାମଣି କାନ୍ତ ଏଥି ଗୁଡିଲିତ ହୃଦ ହେବା ପଥ ଅବୋରନ୍ତି ।
କରୁଣା ଶରଣ ହେବାର ଅଜ୍ଞାନ ମୋହରେ ପାସୋରିଲି । ୫ ।
ତୁମ୍ଭେ ଟୁକୁରୂପେ ସଂସାରେ ପ୍ରଚାର ସେ ପାଦ ଅନୁଲା ଗୁଡିଦେଲି ।
ସ୍ୱପଦ ଦଣ୍ଡିବା ମନ ନ ଗୁଡିବା ପ୍ରବଳପବନେ ଛନ୍ନ ହେଲି । ୬ ।
ଏଥିପାଇଁ ପ୍ରଭୁ ଚୂହାରି କରୁଛି କରୁଣାବୋଇଲି ମେଲି ଧର ।
ଏତେ ପ୍ରମାଦକୁ ତୁମ୍ଭେ ଯେ ସମର୍ଥ ଦୁଃଖପାରାବାରୁ ପାରି କର । ୭ ।
ତୁମ୍ଭ ନାମଧନେ ଧନିକ ହୋଇବ ମନ ନ ବୁଡିବ କାମନାରେ ।
ପାଦପଦ୍ମରସେ ନିସ୍ତଳ ମଧୁପ ହୋଇ ରହୁଥିବ ମଉରରେ । ୮ ।
ସାଧୁପାଦରେଣୁ ଲେଖ ବହୁଥିବ ତୁମ୍ଭ ଦରଶନେ ହୋଇ ଲେଖା ।
ତୁମ୍ଭେ ସର୍ବ ହୃଦେ ବିଜୟ କରଛ ଧ୍ରୁବ କରି ଜାଣିଥିବ ସୁଖ । ୯ ।
ଶ୍ରୀ ଗୁରୁଚରଣ ଆଶ୍ରୟ କାରଣ ଏହା ନ ଛାଡିବ ଦଣ୍ଡେ କର ।
ଯେବେ ନିତ୍ୟାନନ୍ଦ ଶରଣ ଗୋବିନ୍ଦ ପରମାନନ୍ଦ ଆନନ୍ଦ ହର । ୧୦

---

## ଦଶମ ଛାନ୍ଦ ।

ଏବେ କହୁଅଛି ଶୁଣ ସାଧୁଜନେ ମୁଁ ଯେ ତୁମ୍ଭର ଶରଣ ।
ଅଭେଦ୍ୟ ସଂସାର ପ୍ରବୃତ୍ତି ଶୃଙ୍ଖଳରେ ହୋଇଛନ୍ତି ଏଥି [illegible] ।
ମହାପ୍ରଭୁ ହେ । ୧ ।
ତୁମ୍ଭେ କୃପା କଲେ ନୁହିବ ଛଣାଙ୍କ ପ୍ରଭୁପାଦପଦ୍ମପରେ ।
ଅନନ୍ତ ସ୍ୱରନେ ଅବଶ୍ୟ ହସିବେ ମୋ ଦୁଃଖ କୃପାକରିବେ ।
ମହାପ୍ରଭୁ ହେ । ୨ ।

ପରମମଙ୍ଗଳ ନାମ ଅମଙ୍ଗଳନାଶନ ସୁନ୍ଦର ଅଟେ ଯାର ।
ସେ ଛାଡ଼ି କହବେ ସେ ଛାଡ଼ି କହବେ ଅପନାଶନ ମନୋହର । ୧ ।
ଅତଶୀକୁସୁମସୁନ୍ଦର ଯେ ଶ୍ୟାମବରନ ବଚନ୍ତ ପଦ୍ମଲୋଚନା ।
କଟିତଟେ ବାସ ତଡ଼ିତର ହାସ କଦମ୍ବମାଳ ହୃଦୟରେ ଶୋଭା । ୨ ।
ଏମନ୍ତ ପ୍ରଭୁ ମୋ ଦୁର୍ଗତି ହରବେ ଦୁର୍ଗତି ହରବେ ଧ୍ରୁବ କର ।
ଗୋପୀଙ୍କ ରସରେ ଗୋପାଳପୁରରେ ଲବଣୀଚୋର ଯେ କଲେ ଚେଷ୍ଟା ।୩।
ଅପ୍ରାଧ ହରବେ ଅପ୍ରାଧ ହରବେ କରବେ କରୁଣାପ୍ରଦୃଷ୍ଟି ।
ପୂତନାକୁ କ୍ଷମା ଦୁର୍ଗତିରୁ କଲେ ଏମନ୍ତ କରୁଣା ଜଳନିଧି । ୪ ।
ଅହେ ସାନ୍ଦୁନରେ ଦୈତ୍ୟର ମନରେ ଏମନ୍ତ ପ୍ରଭୁ ଦେଖିଛ କାହିଁ ।
ବିଷପାନ ଦେଲା ଅମୃତ ଖାଇଲା ପୁରରେ ରାଖିଲେ ନେଇ । ୫ ।
ଯେତେକ ଅସୁରେ ମାରବା ବଗ୍ରେ ଅପନ୍ତ ବଇରଭାବ ଧର ।
ତାଙ୍କୁ ଦୟା କର କରୁଣାରେ ତାର ଅନନ୍ଦେ ବସାନ୍ତି ସ୍ୱର୍ଗପୁରୀ ।୬।
ମନରେ ନ ଥାଇ ଚତୁର୍ବର୍ଗ ଦେଇ ଏମନ୍ତ ସାମନ୍ତପଣ ଯାର ।
ତା ପାଦେ ନ ରସି କାଳମୋହପାଶୀ ବନ୍ଧନେ ବାନ୍ଧି ହୁଅନ୍ତି ନର ।୭।
ଅହେ ମହାବାହୁ ଏତେ ଅଳ୍ପ ହେଉ ଏଯେ ମୋରବନ୍ଧୁଛନ୍ତି ଯେତେ ।
ବିପଦବନକୁ ଧଇନେଇ ମୋତେ ନରତେ ଜାବା କରନ୍ତି କେତେ ।
କ୍ଷଣେ ଦଣ୍ଡେ କର ତୁମ୍ଭ ନାମ ଧର ନଇବା ଦୈତ୍ୟର କଲେ ମନେ ।
ମନମତ୍ତକର ମନ ମଞ୍ଜି କର ଧରଣ ଭ୍ରମନ୍ତି ଅନୁକ୍ଷଣେ । ୯ ।
ଅହେ ଭଗବାନ ପତିତପାବନ ଅରତଧ୍ୱଂସନ ବିପଦହର ।
କହେ ନିତ୍ୟାନନ୍ଦ ହେ ପ୍ରଭୁ ଗୋବିନ୍ଦ ଜାଣାଣ ଅପ୍ରାଧ କ୍ଷମା କର ।୧୦

ସମ୍ପୂର୍ଣ୍ଣ ।

# ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକ ସଂଶୋଧିତ ହୋଇ ସୁଲଭ ମୂଲ୍ୟରେ ବିକ୍ରୟ ହେଉଅଛି । ଯେଉଁମାନେ ନଗଦ ମୂଲ୍ୟରେ ପୁସ୍ତକ କ୍ରୟ କଲେ ଅଧିକ କମିଶନ ପାଇବେ ।

| | |
|---|---|
| ମୃଗଣୀସ୍ତୁତି | ଟ ॰ ‹୬ |
| ଗଜନସ୍ତୁତିଣ | ଟ ॰ ‹୬ |
| ମନବୋଧ ଚଉତିଶା | ଟ ॰ ‹୬ |
| ସୁବ୍ରମ୍ନତୀ ଚଉତିଶା | ଟ ॰ ‹୬ |
| ଅର୍ତ୍ତତ୍ରାଣ ଚଉତିଶା | ଟ ॰ ‹୧ |
| ଦ୍ରୁପଦ ଚୌତିଶା | ଟ ॰ ‹୬ |
| ହନୁମାନ ଚଉତିଶା | ଟ ॰ ‹୬ |
| କୋଳାହଳ ଚଉତିଶା | ଟ ॰ ‹୬ |
| ମୁଅଧବକେ ଚଉତିଶା | ଟ ॰ ‹୬ |
| ଦେବଦେଃ ଚଉତିଶା | ଟ ॰ ‹୬ |
| ମନାକାନ୍ତ ଚଉତିଶା | ଟ ॰ ‹୧ |
| ଈଶ୍ଵର ଚଉତିଶା | ଟ ॰ ‹୧ |
| ଦତ୍ତ ସହସ୍ରନାମ | ଟ ॰ / |
| ଗୋପାଳସହସ୍ରନାମ | ଟ ॰ ‹୧ |
| ଅର୍ଦ୍ଧଧ୍ଵଂସକ | ଟ ॰ ‹୧ |
| ଧ୍ରୁବ ଚରିତ | ଟ ॰ / |
| ବୈଷ୍ଣବବନ୍ଦନା | ଟ ॰ ‹୬ |
| ଅଲଙ୍କାରବୋଲି | ଟ ॰ ‹୬ |
| ଗୋଷ୍ଠୀକଥା | ଟ ॰ ‹୬ |
| ଲାବଣ୍ୟନିଧି | ଟ ॰ ‹୬ |
| ଆନୁବୋଧକଣ | ଟ ॰ ‹୧ |
| ରସିକାହୃଦଲା | ଟ ॰ ‹୬ |
| କପଟପାଶା | ଟ ॰ / |
| ପ୍ରସ୍ତାବଅବକାଶ | ଟ ॰ ‹୬ |
| କେଶବ କୋଇଲି | ଟ ॰ ‹୮ |
| କାନ୍ତ କୋଇଲି | ଟ ॰ ‹୯ |
| ଲମ୍ବୋଦର କୋଇଲି | ଟ ॰ ‹୬ |
| ସପ୍ତ କବଚସ୍ତୋତ୍ର | ଟ ॰-/ |
| ନାମଦର୍ଶନକ ଓ କୃଷ୍ଣଙ୍କ ଅଷ୍ଟୋତ୍ତରଶତନାମ | ଟ ॰ ‹୬ |
| କନ୍ଧୁବେଲା ସୁଅଙ୍ଗ | ଟ ॰ / |
| କାଳିଦଳନ ସୁଅଙ୍ଗ | ଟ ॰ / |
| ଧନୁଭଙ୍ଗ ସୁଅଙ୍ଗ | ଟ ॰ / |
| କଂସବଧ ସୁଅଙ୍ଗ | ଟ ॰ / |
| ପ୍ରହ୍ଲାଦଚରିତ ସୁଅଙ୍ଗ | ଟ ॰ /୬ |
| ଚନ୍ଦ୍ରାବଳୀ ହରଣ | ଟ ॰ /୬ |
| ବସନ୍ତ ନାଟଗୋବିନ୍ଦ | ଟ ॰ । |
| ମଥୁରାମଙ୍ଗଳ | ଟ ॰ ।/ |
| କିଶୋରଚନ୍ଦ୍ରାନନ୍ଦଚମ୍ପୂ | ଟ ॰ /୬ |
| ଭାବକେଳି | ଟ ॰ ‹୬ |
| ବସନ୍ତ ଭୂତକେଳି | ଟ ॰ ⁄ |
| ଗୁଣସାଗର | ଟ ॰ ⁄ |
| ଲକ୍ଷ୍ମୀପୁରାଣ | ଟ ॰ /୬ |
| ଜ୍ଞାନଭାବଚ୍ଛେଦ ଚଉତିଶା | ଟ ॰ ‹୬ |

ଶ୍ରୀ ଶଶିଭୂଷଣ ରାୟ
ରାୟପ୍ରେସ, କଟକ ।